# ବାରମାସି ଗୀତ ।

ଶ୍ରୀ ଜଗନ୍ନାଥ ପାଣିଗ୍ରାହୀଙ୍କ ଦ୍ୱାରା ରଚିତ ଓ

ଭ୍ରତାମ୍ବୁବାର ପ୍ରକାଶିତ ।

କଟକ-ଅରୁଣୋଦୟ ଯନ୍ତ୍ରାଳୟରେ ମୁଦ୍ରିତ ।

Printed by Nityananda Sahoo
at the Arunodaya Press
CUTTACK
1930

ମୂଲ୍ୟ ଃ ମୂଲ୍ୟ ଏକ ଅଣା ମାତ୍ର ।

# ବାରମାସି ଗୀତ ।

---

## ୧ମ ଛାନ୍ଦ । ରାଗ ଖଣ୍ଡିତା । ଶ୍ରୀକୃଷ୍ଣଉକ୍ତି ।

ମଦନ ଅରତେ ବନେ ବୁଲନ୍ତି ଶ୍ରୀପତି । ରାଧାଙ୍କୁ ନ ଦେଖି କୁଞ୍ଜେ ଝରହେ ଖୋଜନ୍ତି । ଏହିକାଳେ ଗୋ । ଦୂତିକା ପ୍ରବେଶ ତହିଁ ହେଲେ ଗୋ ।୧। ଦୂତୀ ଅଗ୍ରରେ ଶ୍ରୀକୃଷ୍ଣ କରନ୍ତି ଗୁହାରି । ବାରମାସ ଷଡ଼ଋତୁ ଲୀଳା ଅଙ୍ଗକରି । ସହଚରି ଗୋ । କେଉଁ ଦୋଷେ ନଇଲା କଶୋରୀ ଗୋ । ୨ । ମାର୍ଗଶିର ମାସେ ସହି ପଡ଼ଇ ଶିଶିର । ସାଣାଙ୍କଣା ବାଣୀ ରମା ଗଲ କେଣେ ମୋର । ପ୍ରାଣସହି ଗୋ । କିମ୍ପା କରି ନଇଲା କିପାଇଁ ଗୋ ।୩। ପୌଷମାସେ ଅନୁକ୍ଷଣେ ବହଇ ହେମାଳ । ରାଧାପ୍ରେମ ମୋତେ ଅଙ୍ଗ କରୁଛି ଅକୁଳ । କେଣେଯିବି ଗୋ । କାହା ମୁଖ ଅନାଇ ବଞ୍ଚିବି ଗୋ । ୪ । ମାଘରେ ଲେହୁର-ବସନ୍ତ ବହେ ଧୀରେ ଧୀରେ । ରାଧା ବିଚ୍ଛେଦେ ନିକୁଞ୍ଜେ ବୁଲେ ମୁଁ ନଶାରେ । ପ୍ରିୟସହି ଗୋ । ରାଧାଙ୍କୁ କହ ମୋ ଦୁଃଖ ଯାଇ ଗୋ ।୫। ଫଲ୍ଗୁଣମାସେ ବକୁଳ କୁସୁମ ଫୁଟଇ । ରାଧା ବିନୁ କୁଞ୍ଜ ବନ ଅଶୋଭା ଦିଶଇ । ସହଚରି ଗୋ । କ୍ଷୀଣ ହେଲା ତନୁ ଝୁରି ଝୁରି ଗୋ । ୬ । ଚଇତେ ନବପଲ୍ଲବେ ପିକ ରାବୁଥାଇ । ମୋ ପିକବରଜା ରାଧା ନଇଲା କିମ୍ପାଇ । ବସନ୍ତରେ ଗୋ । ମାଳସ୍ନୁହି ଦେବ କେ

ମୋ ଗଲେ ଗୋ । ୭ । ବୈଶାଖେ ଘୋର ଗ୍ରୀଷମ ଝଞ୍ଜାବାତ ବହେ । ଜଗତ ଜନଙ୍କ ପ୍ରାଣ ଅସ୍ଥିର କରଏ । କୁଞ୍ଜବନେ ଗୋ । ଦେଖ ବୁଲୁଅଛି ଅନୁକ୍ଷଣେ ଗୋ । ୮ । ଜ୍ୟେଷ୍ଠେ ଚନ୍ଦନ କର୍ପୂର ବୋଳଲେ ଅଙ୍ଗରେ । ରାଧା ପ୍ରେମବହ୍ନି ସର୍ବ ବିଷ ଜ୍ୱାଳା କରେ । ହେମଗୋର ଗୋ । ତା ବିଚ୍ଛେଦେ ହେଲି ଏତେ ସରୁ ଗୋ । ୯ । ଆଷାଢ଼େ ମେଘ ଗର୍ଜନ ବତାସ ଯେ ଝଡ଼ । ଯମୁନା ଉଚ୍ଛୁଳ ପୁଣି ମାରଇ ଲହଡ଼ି । ତା ବହୁନେ ଗୋ । ଏବେ ଦୁଃଖେ ବୁଲୁଥାଏ ବନେ ଗୋ ।୧୦। ଶ୍ରାବଣେ ଭେକ ଡାହୁକ ସ୍ୱନ ଶୁଣି କର୍ଣ୍ଣେ । ବିରହ ଯାତନା ବଢ଼ୁଅଛି ଚତୁର୍ଗୁଣେ । ବୃନ୍ଦବନ୍ତୀ ଗୋ । କେମନ୍ତେ ସେ ଭୁଲିଲା ମୋ ପ୍ରୀତି ଗୋ । ୧୧ । ଭାଦ୍ରବେ ଯମୁନାକୂଳେ ପୂଜ ଉମାପତି । ବର ମାଗୁଥିଲା ପର କୃଷ୍ଣ ହେବେ ପତି । ବୃନ୍ଦମୁହିଁ ଗୋ । ବନକୁ ନଇଲା କାହିଁପାଇଁ ଗୋ ॥ ଅଶ୍ୱିନେ କୁଆଁଷ ଜନ୍ମେ ଖେଳୁ-ଥିଲି ଘନେ । ସତ୍ୟକର ବୋଇଲା ମୁଁ ଯିବି କୁଞ୍ଜବନେ । କେଉଁପର ଗୋ । ସେ କଥାକୁ ଦେଲାତ ପାସୋର ଗୋ । ୧୩ । କାର୍ତ୍ତିକେ କେଦାରେ ଧାନ୍ୟ ପାଚ ଶୋଭା ପାଏ । ଜଗତ ଜନଙ୍କ ଚିତ୍ତ ଆନନ୍ଦ କରଏ । ବାରମାସ ଗୋ । ପୂର୍ଣ୍ଣ ହେଲା କହ ରାଧା ପାଶ ଗୋ ।୧୪। ଶ୍ରୀରାଧାରମଣ ପଦ୍ମପାଦେ ଦେଇ ଚିତ୍ତ । କହେ ଦୀନ ଜଗନ୍ନାଥ ଯୋଡ଼ି ବେନି ହସ୍ତ । ବିଶ୍ୱମ୍ଭର ହେ । ଭବାର୍ଣ୍ଣବୁ ପ୍ରଭୁ ରକ୍ଷାକର ହେ ।୧୫।



## ୧ମ ଛାନ୍ଦ । ରାଧା ଉକ୍ତି ।

### ରାଧା ଧର ସଖି କର, ଏହି ରାଗେ ।

ରାଧା ପାଶେ ଦୂତୀ ଯାଇ । ଶ୍ୟାମଙ୍କ ବେଦନା କହିଲା ତହିଁ ଗୋ । ଶୁଣି ଆକୁଳେ ବୋଲନ୍ତି ରାଇ । ସଜନି ଗୋ । ୧ । କାର୍ତ୍ତିକ ପୂର୍ଣ୍ଣିମୀଦିନ । ମୁରଲୀ ବଜାଇ ନନ୍ଦା ଅନ୍ତର୍ଦ୍ଧଣ ଗୋ । ଗୋପୀମାନଙ୍କୁ କଲେ ଅଜ୍ଞାନ । ସ ॥ ୨ ॥ ସମସ୍ତ ଗୋପୀଙ୍କି ରାଇ । ମାର୍ଗଶିର ମାସେ ରସ ଭିଆଇ ଗୋ । କୁଞ୍ଜେ କେଳି ରଚିଲେ ମାଧୋଇ । ସ ॥ ୩ ॥ ପୁଷ୍ୟାଭିଷେକ ପୌଷରେ । ହୋଇଲେ ମୋ ସଙ୍ଗେ କୁଞ୍ଜବନରେ ଗୋ । ରାଜା ରାଣୀ ହୋଇଲୁ ସେଠାରେ । ସ ॥ ୪ ॥ ମାଘ ମାସରେ ମୋହନ । ପଶା ଖେଳୁଥାନ୍ତି ମୋର ସଙ୍ଗେଣ ଗୋ । ସେ କଥା କି ପାଶୋରିବ ମନ । ସ ॥ ୫ ॥ ଫଗୁଣେ ଖେଳିଲେ ହୋରି । ଅବିର ପିଙ୍ଗନ୍ତି ଗୋପିକା ମିଳି ଗୋ । କେନ୍ତୁ ମାରେ ରଙ୍ଗ ପିଚକାରି । ସ ॥ ଚଇତେ ମଞ୍ଜି ବକୁଳ । ଫୁଟି ଉପବନ ଦିଶେ ମଞ୍ଜୁଳ ଗୋ । ଗୁନ୍ଥି ଲମ୍ବାଇ ତାଙ୍କ ଗଳାର । ସ ॥ ୬ ॥ ବୈଶାଖ ମାସରେ ବନେ । ବସନ୍ତ ଆମୋଦେ ବୁଲନ୍ତି ବନେ ଗୋ । କେତେ ରଙ୍ଗେ ନାଚନ୍ତି କାନନେ । ସ ॥ ୭ ॥ ଜ୍ୟେଷ୍ଠ ମାସରେ କହ୍ନାଇ । ଦୋଳି ଖେଳୁଥାନ୍ତି ବଂଶୀବଜାଇ ଗୋ । ନାନା ରଙ୍ଗେ ଗୀତମାନ ଗାଇ । ସ ॥ ଆଷାଢ଼େ ମେଘ ଗର୍ଜ୍ଜନ । ଗୋପବାଳକଙ୍କୁ ସଙ୍ଗେ ଘେନିଣ ଗୋ ।

ଯମୁନାରେ ଖେଳନ୍ତି ମୋହନ । ସ ॥ ୧୦ ॥ ଶ୍ରାବଣେ ପ୍ରବଳ ଘନ । ଧାଇଁ ଲଗିଥାନ୍ତି ନନ୍ଦନନ୍ଦନ ଗୋ । କର ଧରନ୍ତି ଗୋପିକା-ଗଣ । ସ ॥ ୧୧ ॥ ଭାଦ୍ରବେ ଜନମଦ୍ଦନ । ଉତ୍ସବ ହୁଅଇ ଗୋପ ନଗ୍ରେଣ ଗୋ । ପ୍ରତି ଘରେ ଭୁଞ୍ଜନ୍ତି ମୋହନ । ସ ॥ ୧୨ ॥ ଆଶ୍ୱିନେ କୁଆଁ ସାଜନ୍ତି । ଗୋପିଙ୍କ ସଙ୍ଗତେ ନନ୍ଦନନ୍ଦନ ଗୋ । ବଂଶୀ ବଜାଇ ବୁଲନ୍ତି ବନ । ସ ॥ ୧୩ । ମଦନମୋହନ ମୂର୍ତ୍ତି । ମୋ ଦମ୍ଭ ପଣକୁ ଦେଲେ କରତ ଗୋ । ତାଙ୍କ ସ୍ନେହ ଅଙ୍କିତ ମୋ ଧୃତି । ସ ॥ ୧୪ ॥ ପୂର୍ଣ୍ଣହେଲା ବାରମାସ । କହିବୁ ଦୂତ ତୁ ଶ୍ରୀକୃଷ୍ଣ ପାଶ ଯେ । ଭଣେ ଜଗନ୍ନାଥ ଲୀଳାରସ । ସୁଜନେ ହେ ॥ ୧୫ ॥



## ୩ୟ ଛାନ୍ଦ । ଓଗାଳ ବୃତ୍ତେ ।

## ରାସଲୀଳା ।

ଜୟ କଳାକାନ୍ତ ନନ୍ଦନନ୍ଦନ । ମୁ ଲୀ ସ୍ୱନରେ ମୋହିଲେ ମନ । ମୋ କାହ୍ନୁରେ ॥ ଜୟ ରାଧାପ୍ରାଣନାଥ ମୁରହର । ବଂଶୀସ୍ୱନେ ଗୋପୀ ଚିତ୍ତକୁ ହର ॥ ମୋ ॥ ବୃନ୍ଦାବନେ ଧନେ ଲବଙ୍ଗାରଣ୍ୟେ । ନଶାଙ୍କେ ପ୍ରବେଶ ହୋଇ ସେ ସ୍ଥାନେ ॥ ମୋ ॥ ଘନଘନ ବଂଶୀ ଫୁଙ୍କି ଅଧରେ । ଗୋପୀଙ୍କୁ ଡାକନ୍ତି ମଧୁର ସ୍ୱରେ ॥ ମୋ ॥ ଅସ ଗୋପଙ୍ଗନା ମୋ ପ୍ରାଣସଖି । ବଂଶୀ ଶୁଣି ଗୋପୀ ହୋଇଲେ ବାଇ ॥ ମୋ ॥ ବଂଶୀ-

ସ୍ୱନ ସଙ୍ଗେ ପଞ୍ଚମବାଣ । ବିନ୍ଧେ ଗୋପୀମାଙ୍କୁ ସେ ଘନ ଘନ ॥ ମୋ ।
ସର୍ବ ଗୋପାଙ୍ଗନା ମେଳ ହୋଇଲେ । ରାଧାଙ୍କୁ ଘେନିଣ କୁଞ୍ଜେ
ମିଳିଲେ ॥ ମୋ ॥ ନନ୍ଦନନ୍ଦନଙ୍କ ଭେଟିଲେ ଯାଇଁ । ଗଳେ ଚୂଳେ
ପୁଷ୍ପ ଖଞ୍ଜିଲେ ଗୋଇ ॥ ମୋ ॥ ଗୋପୀଙ୍କ ସଙ୍ଗତେ ଜଗମୋହନ ।
ରାସ ଆରମ୍ଭିଲେ କୁଞ୍ଜରେ ପୁଣ ॥ ମୋ ॥ ମାୟାଧର ପ୍ରଭୁ ମାୟା
ରଚିଲେ । ଏକ ଗୋପୀକି ଏକ କୃଷ୍ଣ ହେଲେ ॥ ମୋ ॥ ଗୋପୀଙ୍କ
ସଙ୍ଗତେ ନନ୍ଦକୁମର । ରାସଲୀଳା କଲେ କୁଞ୍ଜବନର ॥ ମୋ ॥
ଗୋପୀମାନେ ମନେ ଗର୍ବ ବହିଲେ । ଅନ୍ତର୍ଯ୍ୟାମୀ ଜାଣି ଅନ୍ତର
ହେଲେ ॥ ମୋ ॥ କୃଷ୍ଣଙ୍କୁ ନ ଦେଖି ଗୋପିକାଗଣ । ବିରହେ
ଖୋଜନ୍ତି ଗହନ ବନ ॥ ମୋ ॥ ସର୍ବ ଗୋପୀମାନେ ହୋଇଲେ
ଠୁଳ । କୃଷ୍ଣ ଗୁଣଗୁଣି ହେଲେ ବିକଳ ॥ ମୋ ॥ ଅଟେ ଏ ଚଇତ୍ର
ବସନ୍ତକାଳ । କୁସୁମେ ମଣ୍ଡିତ ନବତମାଳ ॥ ମୋ ॥ ବୈଶାଖ
ମାସରେ କୋକିଳ ସ୍ୱନ । କି ଦୋଷେ ତେଜଇ ନନ୍ଦନନ୍ଦନ ॥ ମୋ ॥
ଜ୍ୟେଷ୍ଠ ମାସେ ଘୋର ଗ୍ରୀଷ୍ମ କାଳ । କେଣେ ଗୁପ୍ତଗଲେ ସେ
ଚଉରେର ॥ ମୋ ॥ ଆଷାଢ଼ ମାସରେ ମେଘ ଗର୍ଜନ । କାହା ସଙ୍ଗେ
ଅଛେ ବନ୍ଧୁ ଧନ ॥ ମୋ ॥ ଶ୍ରାବଣ ମାସରେ କିଆ ଫୁଟଇ ।
ଗୋପୀଙ୍କି ଖାଇବ କଳାକହ୍ନାଇ ॥ ମୋ ॥ ଭାଦ୍ରବେ କଦମ୍ବ ଫୁଟି
ଲୋଟଇ । ଦୂତନାକୁ ପଗ ଖାଇଲା ଏହ୍ନ ॥ ମୋ । ଆଶ୍ୱିନେ ଚନ୍ଦ୍ର

ଛ ଶୋଭା ଦିଶଇ । ଅମ୍ଭ କୃଷ୍ଣଚନ୍ଦ୍ର କେଣେ ଅଛଇ ॥ ମୋ ॥ କାର୍ତ୍ତିକେ ଗୋବର୍ଦ୍ଧନ ପୂଜା ପୁଣି । କେଣେ ଛନ୍ଦିଗଲେ ମୁରଲୀ-ପାଣି ॥ ମୋ ॥ ମାର୍ଗଶିରେ ପଡ଼େ ହିମ ବହୁତ । କୃଷ୍ଣ ବିନୁ ଅସ୍ଥି ନୁହଇ ଚିତ୍ତ ॥ ମୋ ॥ ପୌଷ ମାସ ଜାଡ଼ ଭାଙ୍ଗଇ ହାଡ଼ । ଦେଖି ନନ୍ଦପୁଅ କପଟ ଛାଡ଼ ॥ ମୋ ॥ ମାଘରେ ମାଧବ ସଙ୍ଗତେ ପଶା । ଖେଳୁଥାନ୍ତୁ ବନେ ସକଳ ଯୋଷା ॥ ମୋ ॥ ଫଗୁଣମାସେ ହୋଇବ ଜାଗର । କୃଷ୍ଣ ବିନୁ ସବୁ ଦିଶେ ଅନ୍ଧାର ॥ ମୋ ॥ ଜଗତବନ୍ଧୁ କାହିଁକି ବୋଲାଏ । ଗୋପୀଙ୍କ କର୍ମକୁ ନିଷ୍ଠୁର ହୁଏ ॥ ମୋ ॥ ରାଧା ଗୋବିନ୍ଦ ପାଦେ ରହୁ ଚିତ୍ତ । ଗୀତେ କହଇ ଦୀନ ଜଗନ୍ନାଥ ମୋ କାହ୍ନୁରେ ॥



## ୪ର୍ଥ ଛାନ୍ଦ । ରାଗ ଚନ୍ଦ୍ରଭୈରବ ।

ଦୂତୀ ଶ୍ରୀକୃଷ୍ଣ ପାଶକୁ ଯାଇ । ରାଧା ବିରହ କହିଲେ ତହିଁ । ବୃଷଭାନୁଜେମା ତୁମ୍ଭର ବିହୁନେ ଅନ୍ନପାଣି ତାଙ୍କୁ ନ ରୁଚଇ ହେ । ମୋହନ ॥ ମାର୍ଗଶିରେ ହେମନ୍ତର କାଳ । କର ନିବେଶି ଗଣ୍ଡ-ମଣ୍ଡଳ । ପୂର୍ଣ୍ଣଚନ୍ଦ୍ରାନନୀ ମସ୍ତକ ଅନାଇ ନେତ୍ରୁ ବର୍ଷୁ ଅଛଇ ଜଳ ହେ । ମୋ ॥ ପୌଷେ ବରଷେ ଶିଶିର ଧାର । ଶୀତେ ପ୍ରାଣୀଙ୍କ କରେ ଅସ୍ଥିର । ତୁମ୍ଭ ଗୁଣ ଗୁଣି ରାଧାଠାକୁରାଣୀ ବେଶ ଭୂଷଣ ମନେ

ଅସାର ହେ । ମୋ ॥ ମାଘେ ମାଧବଙ୍କୁ ଚାହିଁ ଚାହିଁ । ଉଜାଗରେ ନିଶି ଗଲା ପାହି । ତୁମ୍ଭ ବଂଶୀସ୍ୱନ କର୍ଣ୍ଣେ ନ ଶୁଣିଣ ପ୍ରାଣ ଅକୁଳ ହେଉ ଅଛଇ ହେ । ମୋ ॥ ଫଗୁଣରେ ଦୋଳ ବାନ୍ଧି ସଇ । ତୁମ୍ଭ ସଙ୍ଗତେ ଖେଳିବା ପାଇଁ । ସୁବାସ କୁସୁମେ ମାଳ ଗୁନ୍ଥିଥିଲି ତୁମ୍ଭ ଗଳେ ଦିଅନ୍ତା ଲମ୍ବାଇ ହେ । ମୋ ॥ ଚଇତ୍ରେ ବେଶକାରମାନେ । କର୍ପୂରକୁ ଘୋଳିଣ ଚନ୍ଦନେ । ଶ୍ରୀଅଙ୍ଗେ ଲେପିବା ପାଇଁ ଚାହିଁ ଥିଲେ ସବୁ ନିଷ୍ଫଳ ତୁମ୍ଭ ବିହୁନେ ହେ । ମୋ ॥ ବୈଶାଖରେ ରବି ରଶ୍ମି ଘାତେ । ଦେହ ଜଳୁଅଛି ଅବିରତେ ॥ ବିରହଜ୍ୱାଳାରେ ଗୋପିକା ସଙ୍ଗତେ ଦହି ହୁଅନ୍ତି ରାଧା ସଙ୍ଗତେ ହେ । ମୋ ॥ ଜ୍ୟେଷ୍ଠ ମାସେ ଆହେ ନନ୍ଦ କାହ୍ନୁ । ରାଧା ପ୍ରୀତି ପାଶୋରିଲ ମନୁ । ନିଶ୍ୱାସ ବଦନେ ବିରହ ଯାତନା ଗୁରୁଭାର କଲା ଜନୁ ତନୁ ହେ । ମୋ ॥ ଆଷାଢ଼ରେ ମେଘ ମାଳ ମାଳ । ଆଚ୍ଛାଦିଲେ ଗଗନମଣ୍ଡଳ । ନବଘନ ତନୁ ଦର୍ଶନ ବିହୁନେ ଅନୁକ୍ଷଣେ ହୁଅନ୍ତି ଆକୁଳ ହେ ॥ ମୋ ॥ ଶ୍ରାବଣରେ ମେଘ ଘଡ଼ଘଡ଼ି । ଚମକାଏ ଦେଇ ଘୋର ବଢ଼ି । କାପାଇଁ ନିଷ୍ଠୁର ହୋଇଲ ମୋହନ ପିଣ୍ଡୁ ପ୍ରାଣ ନିଶ୍ଚେ ଯିବ ଛାଡ଼ି ହେ । ମୋ ॥ ଭାଦ୍ରବରେ ନଦୀମାନେ ପୂର୍ଣ୍ଣ । ପୂର୍ଣ୍ଣଜଳେ ଶୋଭଇ ଧରଣୀ । ପୁଷ୍କରଣୀ ଜଳେ ରାଣୀଙ୍କ କାରଣେ କ୍ରୀଡ଼ା କରୁଅଛି କୁମୁଦିନୀ ହେ । ମୋ ॥ ଦିଗ ନିର୍ମଳ ହେଲେ ଆଶ୍ୱିନ । ଶୋଭେ ଶରଦ

ଚନ୍ଦ୍ର କିରଣ । ଚନ୍ଦ୍ରମାବଦନୀ ତୁମ୍ଭର ବିରହେ ସନ୍ଧ୍ୟା ଗ୍ରାସିଲା ପ୍ରାୟ ମଳିନ ହେ । ମୋ ॥ କାନ୍ତ ବିଚ୍ଛେଦେ କାର୍ତ୍ତିକେ ପୁଣି । ଶୋକେ ଗଡ଼ୁ ଅଛଇ ଧରଣୀ । ଅହେ ପ୍ରାଣେଶ୍ୱର ହୋଇଲ ଅନ୍ତର ମନେ ନ ପଡ଼େ ଏ ଅଭାଗିନୀ ହେ । ମୋ ॥ ଦୂତୀ ଜଣାଇ ହେଲେ ମଉନ । କୃଷ୍ଣ ବୋଲନ୍ତି ଗୁରୁ ବଚନ । ମୋର ତନୁ କେତେ ଯାତନା ସହିଲା ଅଙ୍ଗ ଫେଡ଼ିବା ତାର କଷଣ'ଗୋ । ଦୂତିକେ ॥ ଦୂତୀ ପ୍ରଣମି ଚଳିଲେ ପୁର । ରାଧା ବିରହେ କୃଷ୍ଣ କାତର । ଦୀନ ଜଗନ୍ନାଥ ସେ ପାଦେ ଶରଣ ରକ୍ଷା କର ପ୍ରଭୁ ଚକ୍ରଧର ହେ । ଶ୍ରୀକୃଷ୍ଣ ॥



୫ ମ ଛାନ୍ଦ । ରାଗ ଆଷାଢ଼ଶୁକ୍ଳବାଣୀ ।

ଶ୍ରୀବୃନ୍ଦାବନରେ କଳା କହ୍ନାଇ । ନିଶାରେ ପ୍ରବେଶ ହୋଇଲେ ଯାଇଁ । ରଙ୍ଗଅଧରେ ବଂଶୀ ବଜାଇଲେ । ନାମ ଧରି ଗୋପୀଙ୍କୁ ଡ଼ାକିଲେ । ଅଧ ଗୋ ରାଧିକା । ବୃନ୍ଦାବନେ କାହ୍ନୁ ଅଛନ୍ତି ଏକା ॥ ବଂଶୀ ଶୁଣି ଗୋପୀ ହେଲେ ବାଉଳା । କେଶ ବସନ ହେଲା ଅସମ୍ଭାଳ । କେହୁ ବାଳକ ଧରିଥିଲା କୋଳେ । ଫିଙ୍ଗିଣ ଧାଇଁଲା ପ୍ରାଣବଲ୍ଲଭେ । କେହୁ ରମାବର । କଣ୍ଠ ବସନ ମଣି ସୁରୁ ଭାର ॥ ଏକ ଗୋପୀ ଦଧି ମନ୍ଥୁ ଯେ ଥିଲା । ମନ୍ଥନଦଣ୍ଡ ଧରିଣ ଧାଇଁଲା । କେହୁ ରମା କରେ

ଧର ମୁକୁର । ଶ୍ୟାମଙ୍କୁ ଥିଲା କେଶକୁ ତାହାର । ବଂଶୀଶୁଣି ବାଳା । ପ୍ରାଣ ବଳକଲେ କୁଞ୍ଜକୁ ଧାଇଁଲା ॥ କାହା ବେଣୀରୁ ଖସେ ମଥାମଣି । କଣ୍ଠଦେଶେ ଲମ୍ବି ଅଛଇ ପୁଣି । କେ ଏକ ଚକ୍ଷୁରେ ପିନ୍ଧ ଅଞ୍ଜନ । ଧାଇଁଲା କଙ୍କଣ ଖଣ୍ଡ ଯେସନ । କାହାର ଦୁକୂଳ । ଲୋଟୁ ଅଛଇ ଅବନୀ ମଣ୍ଡଳ ॥ ଜଳଘଟ ଯେନ କେହୁ ରମଣୀ । ଯାଉଥିଲା ନିଜ ବାସକୁ ପୁଣି ॥ ମୁରଲୀ ଶୁଣି ହୋଇଲା ବ୍ୟାକୁଳ । ଘଟ ଫିଙ୍ଗି ଧାଏଁ ଯୁବତୀବର । କାହିଁ କଳାକାହ୍ନୁ । ଜୀବ ଥିବା ଯାଏ ପିବଇ ମନୁ ॥ ଏକ ଗୋପୀଏ ଭୁଞ୍ଜୁଥିଲା ଭାତ । ଛାଡ଼ ଧାଇଁଲା ଗୋପୀଙ୍କ ସଙ୍ଗତ । କେ କାହାକୁ ଡ଼ାକେ ଅସ ଗୋ ସଖି । ଅରେରେ ବୋଲେ ପଥ ଦଶୁ ନାହିଁ । କେତେ ପଥ ଅଛୁ । କେମନ୍ତେ ଭେଟିବା ନନ୍ଦରବତ୍ସ । ହୁଳହୁଳ ଦେଇ ଗୋପକାମିନୀ । ଧାଇଁଲେ ଗୋପ ନଗରରୁ ପୁଣି ॥ କାହାର ସ୍ୱାମୀ ପଥ ଓଗାଳଲେ । କାହାର ଗୁରୁଜନ ମନାକଲେ ॥ ନ ଶୁଣି ସେ ଗିର । ଧାଇଁଲେ ଦେଖିବେ ନନ୍ଦକୁମର ॥ ଏକ ଗୋପୀ ସ୍ୱାମୀ ବୋଲ ନ ଶୁଣି । ଧାଇଁଲା ଦେଖିବ ମୁରଲୀପାଣି ॥ ସ୍ୱାମୀ ତାହାକୁ କରଣ ବନ୍ଧନ । ଗମ୍ଭୀର ମଧ୍ୟେ ରଖିଲା ନେଇଣ । ବହୁ ଶାସ୍ତି ଦେଲା । ସେହେଲେ ବାନ୍ଧି ଦ୍ୱାରଦେଶ ମୁଦିଲା ॥ ବନ୍ଧନରେ ପଡ଼ ସେହି ଗୋପିକା । ଡ଼ାକଇ କାହିଁଅଛ ଚକ୍ରପାଣି ॥ କୃଷ୍ଣଙ୍କ ପ୍ରାଣ ଯପାଇଁ ଉଡ଼ୁଛ । ତୁମ୍ଭଙ୍କୁ ନ ଦେଖି ବନ୍ଧନେ ଅଛୁ ॥ ଧିକ ମୋ

ଜୀବନ । କେବେ ନ ଦେଖିଲୁ ନନ୍ଦନନ୍ଦନ ॥ ଅହେ କୃଷ୍ଣଚନ୍ଦ୍ର କରୁଣାସିନ୍ଧୁ । ଦୀନାର୍ତ୍ତିଭଞ୍ଜନ ଜଗତବନ୍ଧୁ । କେଉଁ ଅପରାଧ କଲୁ ଚରଣେ ରଖିଲ ମୋତେ କର୍କଶ ବନ୍ଧନେ । ଅହେ ପ୍ରାଣେଶ୍ୱର । ତୁମ୍ଭ ବିହୁନେ ତେଜିବ ଶରୀର ॥ ଗୋବିନ୍ଦ ଦର୍ଶନ ନ ପାଇ ଗୋଇ । ବିକଳେ କାନ୍ଦେ ଚନ୍ଦ୍ରାବଳ ଗୁହିଁ । ବେଳୁଁ ବେଳୁଁ ଶୋକସିନ୍ଧୁ ବଢ଼ିଲା । ସ୍ତମ୍ଭରେ ମୁଣ୍ଡ କୋଡ଼ି ହୋଇ ମଲା । ଏହିକାଳେ ହରି । ଦର୍ଶନ ଦେଲେ ସ୍ତମ୍ଭରୁ ବାହାର ॥ ଗୋପୀ ବିକଳ ସହି ନ ପାରିଲେ । ଗମ୍ଭୀରା ମଧ୍ୟେ ପ୍ରବେଶ ହୋଇଲେ । ନବଘନଶ୍ୟାମ ବଂଶୀବଦନ । ସ୍ତମ୍ଭରୁ ବାହାର ହେଲେ ଦର୍ଶନ । ଦେଖି ଗୋପଗୋଇ । ପ୍ରାଣ ଛାଡ଼ିଲା କୃଷ୍ଣମୁଖ ଚାହିଁ ॥ ଶ୍ରୀକୃଷ୍ଣ ଦର୍ଶନେ ମୁକ୍ତି ଲଭିଲା । ଅଚ୍ୟୁତ ଚରଣେ ଦାସୀ ହୋଇଲା ॥ ଏଥି ଉତ୍ତାରୁ ଗୋପାଙ୍ଗନାମାନେ । ପ୍ରବେଶ ହେଲେ ଯାଇ କୁଞ୍ଜବନେ । ଶୁଭେ ବଂଶୀସ୍ୱନ । ସୁସ୍ୱରେ ବଜାନ୍ତି ନନ୍ଦନନ୍ଦନ ॥ ଯାଇଁ ଗୋପୀମାନେ ଦେଖିଲେ ହରି । ଶ୍ରୀରାଧା ସହ ନିକୁଞ୍ଜବିହାରୀ । ତ୍ରିଭଙ୍ଗିଛନ୍ଦେ ଉଭା ହୋଇଛନ୍ତି । ବଂଶୀରେ ସ୍ୱନେ ଜଗତ ମୋହନ୍ତି । ମଦନ ମୋହନ । କୋଟି କନ୍ଦର୍ପ ନୋହିବେ ସମାନ ॥ ତ୍ରିଭଙ୍ଗି ଚୂଡ଼ାରେ ମୟୂରଚୂଳ । ରତ୍ନପାଟଶ ଶୋଭେ କାଇଁଚମାଳ । ମଲ୍ଲୀ ନାଗେଶ୍ୱର ଚମ୍ପା ମାଳତୀ । ଯୁଡ଼ା ଚୂଡ଼ପାଶେ ଶୋଭା ଦିଶନ୍ତି । କପାଳରେ ଚିତା । ଦେଖି ଦେହ ଧରିବ କେ ବନିତା ॥ ଭ୍ରୂଲତାର ଭଙ୍ଗିକାମକମାଣ ।

ନୟନେ ପେଷନ୍ତି ମୋହନ ବାଣ । ନାସାରେ ଗଜ ମୁକୁତା ଶୋଭଇ । ରଙ୍ଗ ଅଧରେ ବଂଶୀ ବାଜୁଥାଇ । କଣ୍ଠେ ପୁଷ୍ପମାଳ । ହୃଦକୁ ଲମ୍ବିଛି କଦମ୍ବ ହାର ॥ କଉସ୍ତୁଭମଣି ହୃଦେ ବିରାଜେ । ବାହୁରେ ବାହୁଟି କଙ୍କଣ ସାଜେ । ସ୍ୱର୍ଣ୍ଣ କଣ୍ଠି ମିଶା ପୋହଳା ହାର । ମଣିବନ୍ଧରେ ଦିଶଇ ସୁନ୍ଦର । କଟି ସିଂହଠାଣି । ଦେଖି ଦେହ ଧରବ କେ ରମଣୀ ॥ କଟୀତଟେ ଶୋଭେ ପୀତଦୁକୂଳ । ତହିଁ ଉପରେ ରତ୍ନ ଘାଗୁଡ଼ି ମାଳ । କଳା ଶ୍ରୀଅଙ୍ଗକୁ ଶୋଭା ଦିଶଇ । ନବଘନେ କି ବିଜୁଳି ଖେଳଇ । ପଦ୍ମରେ ନୂପୁର । ନାଦେ ମୋହନ୍ତି ଚତୁର୍ଦ୍ଦଶ ପୁର ॥ ରତ୍ନ ମୁଦ୍ରିକା ଶୋହେ ଅଙ୍ଗୁଷ୍ଠିରେ । ବଂଶୀ ବଜାନ୍ତି କି ମଧୁର ସ୍ୱରେ । ଗୋପାଙ୍ଗନାମାନେ ପାଦେ ନମିଲେ । ଶ୍ରୀକୃଷ୍ଣଙ୍କ ଚଉପାଖେ ବେଢ଼ିଲେ । ଦେଖି ଶ୍ୟାମଚନ୍ଦ୍ର । ଇଙ୍ଗିତେ ଭାଷନ୍ତି କରୁଣାସିନ୍ଧୁ ॥ ନିଶାର୍ଦ୍ଧେ କିପାଁ ଗୋ ଅଇଲ ଧାଇଁ । ଗୋପୀ ବୋଲନ୍ତି ବଂଶୀ କଲ୍ଲ ବାଇ । କୃଷ୍ଣ ବୋଇଲେ ଅଟ ଯୁବା ନାରୀ । କୁଳ କଳଙ୍କକୁ ଭୟ ନ କର । ଅଇଲ କପାଇଁ । ଗୃହ ସ୍ୱାମୀ ପୁତ୍ର କାହାକୁ ଦେଇ ॥ ଗୋପୀ ବୋଇଲେ ତୁମ୍ଭେ ଅଟ ସର୍ବ । ସ୍ୱାମୀ ପୁତ୍ର ଧନ ରତନ ଦ୍ରବ୍ୟ । ତୁମ୍ଭଙ୍କୁ ଦେଖି ସମସ୍ତ ପାଶୋରୁ । ତୁମ୍ଭେ ଅଟ ନାଥ ଜଗତ ଗୁରୁ । ତୁମ୍ଭ ଯୋଗେ ହର । ଜଗତେ କାହାକୁ ଭୟ ଅମ୍ଭର ॥ ଶ୍ରୀକୃଷ୍ଣ ବୋଇଲେ ଶୁଣ ଗୋ ସନ୍ଧ । କଂସ ପ୍ରତାପ କି ନ

ଜାଣୁ ତୁହ୍ନ । ଶୁଣିଲେ ତୁମ୍ଭ ଅମ୍ଭ ପ୍ରାଣ ନେବ । ଗୋପପୁର ଛାରଖାର କରିବ । ଏଥିଁ ଯା ପଳାଇ । ପ୍ରାଣକୁ ଆଶ ଅଛ ଯେବେ ସହ୍ନ ॥ ଗୋପୀ ବୋଇଲେ ହେ ଶ୍ୟାମ ନାଗର । କେତେ ହଠ କର ଅମ୍ଭ ସଙ୍ଗର । ତୁମ୍ଭ ବଂଶୀ ଅମ୍ଭ ନାମକୁ ଧର । ଡାକିଲା କିମ୍ପା ଆସ ଗୋପନାରୀ । ପୁଚ୍ଛନ୍ତି ତାହାକୁ । ସ୍ୱଇଚ୍ଛାରେ ଆସି ନାହୁଁ କୁଞ୍ଜକୁ ॥ ମନ୍ଦ ମନ୍ଦେ ହସି ମୁରଲୀଧର । ବୋଇଲେ ଆସ ହେ ରମଣୀବର । ମନୁ ଅଭିମାନ ତେଜ ସଜନ । ଶୁଣି ଧାଇଁଲେ ସକଳ ଗୋପିନୀ । ଯେନ ପୁଷ୍ପମାଳ । ଶ୍ରୀକୃଷ୍ଣ ଗଳେ ମଣ୍ଡିଲେ ସକଳ ॥ ଗୋପୀ ଗୋବିନ୍ଦ ରସରେ ମାତିଲେ । ଅବସନ୍ତରେ ବସନ୍ତ ବନ୍ଧିଲେ । ଶୁଷ୍କ ତରୁ ପଲ୍ଲବିଲେ କୁଞ୍ଜରେ । ମାୟାଧର ପ୍ରଭୁ ମାୟା ବଳରେ । କହେ ଜଗନ୍ନାଥ । ଶ୍ରୀପଦେ ରଖ ଅହେ ଗୋପୀନାଥ ॥



୧୬ଷ୍ଠ ଛନ୍ଦ । ଶ୍ରୀରାମଚନ୍ଦ୍ରଙ୍କ ବାରମାସି ।

ରାଗ ଖଣ୍ଡିତା ।

ମାଲ୍ୟବନ୍ତ ଶିଖେ ରାମ କରନ୍ତି ରୋଦନ । କେଣେ ଛାଡ଼ିଗଲ୍ଲ ସୀତେ ମୋ ଜୀବ ଜୀବନ । ପ୍ରାଣସହ୍ନ ଗୋ । କେମନ୍ତେ ମୂର୍ଚ୍ଛିବ ତୋତେ ମୁହିଁ ଗୋ । ୧ । ଏହ୍ନ ମାର୍ଗଶିରେ ଥିଲ ମୋ ସଙ୍ଗରେ

ବନେ । ପାଦେ ହେମ ଲଗି କଣ୍ଟା ଫୁଟ ଅନୁକ୍ଷଣେ । ବିମ୍ବାଧର ଗୋ । କେଉଁ ଦୋଷେ ହୋଇଲୁ ଅନ୍ତର ଗୋ । ୩ । ପୌଷ ମାସେ ଶୀତେ ତନୁ ହୁଏ ଥରହର । ମୋର ସଙ୍ଗେ ଦିନ କାଟୁଥାଉ ନିରନ୍ତର । ଶ୍ୟାମାବର ଗୋ । କେଉଁ ଦୋଷେ ହୋଇଲୁ ଅନ୍ତର ଗୋ । ୩ । ମାଘରେ ଶ୍ରୀବସନ୍ତ ଲାଗନ୍ତେ କାନନ । ବୃକ୍ଷ ଲତା ପଲ୍ଲବଶ ଦିଶେ ଶୋଭିବନ । ଚନ୍ଦ୍ରମୁହିଁ ଗୋ । ଦେଖି କେତେ ପ୍ରେମ ହେଉ ଥିଲୁ ଗୋ । ୪ । ଫାଲ୍‌ଗୁନେ କୋକିଳ କୁହୁ କୁହୁ ରବୁ ଥାଇ । ଚୁଅମ୍ବର ଫଳ ଦେଖି ପ୍ରେମ ହେଉ ସଖି । ଚମ୍ପାଗୋର ଗୋ । ଡାକୁଥାଉ ଚୁଚୁକାର କରି ଗୋ । ୫ । ଚଇତେ ସୁବାସ ପୁଷ୍ପ ଫୁଟେ କାନନରେ । ଫୁଲ ତୋଳି ହାର ଗୁନ୍ଥୁଥାଉ କି ଯତନରେ । ଏଣୀ-ଦୃଶି ଗୋ । ଗୁନ୍ଥି କେ କହିବ ପାଶେ ବସି ଗୋ । ୬ । ବୈଶାଖ ମାସରେ ଗ୍ରୀଷ୍ମ କରଇ ଅକୁଳ । ଅଗୁରୁ ଚନ୍ଦନ ଗୋଳି ଲେପୁ ମୋ ଅଙ୍ଗର । ହେମଗୋର ଗୋ । ବଞ୍ଚୁଥାଉ ଦିବସ ଶର୍ବରୀ ଗୋ ॥ ଜ୍ୟେଷ୍ଠମାସ ଖର ଅତି ଦାରୁଣ ଅଟଇ । ସୁବାସ କୁସୁମେ ଶଯ୍ୟା ମଣ୍ଡୁ ଚନ୍ଦ୍ରମୁହିଁ । ନାଗବର ଗୋ । ତୋ ବିହୁନେ ସମସ୍ତ ଅନ୍ଧାର ଗୋ । ୮ । ଆଷାଢ଼ରେ କଳାମେଘ ଘୋଟଇ ଆକାଶ । ବନଲତା ଗିରି ଆଦି କରଇ ଅଦୃଶ୍ୟ । କୁନ୍ଦଦନ୍ତି ଗୋ । ଭୟେ ଲୁଚି ବସୁ ମୋର କତି ଗୋ । ୯ । ଶ୍ରାବଣେ ଘୋରଗର୍ଜ୍ଜନେ ବରଷଇ ଜଳ ।

ବଜ୍ର ନାଦେ ଚମକ୍କଣ ହେଉ ତୁ ଅକୂଳ । ସ୍ୱାମୀମଣି ଗୋ । ନ ବଞ୍ଚିବ ତୋ ବଚ୍ଛେଦେ ପୁଣି ଗୋ । ୧୦ । ଭାଦ୍ରବ ମାସରେ ଅନନ୍ତଙ୍କୁ ପୂଜୁଥାଉ । ସ୍ୱାମୀ ମୋ କୁଶଳେ ଥାନ୍ତୁ ବୋଲି ତୁ ଜଣାଉ । ଗ୍ରମାଚନ୍ଦ୍ର ଗୋ । ଘୋରବନେ ହୋଇଲୁ ଅନ୍ତର ଗୋ ॥ ଅଶ୍ୱିନେ ଶରଦ ଚନ୍ଦ୍ର ଉଦେ ଗଗନରେ । ତୋ ମୁଖ ଶୋଭାକୁ ସମ ନୋହି ଲଜ୍ଜାଭରେ । ଚନ୍ଦ୍ରବଦନ ଗୋ । ଝୁରି ଝୁରି ତନୁ କରେ କ୍ଷୀଣ ଗୋ । ୧୨ । କାର୍ତ୍ତିକ ସ୍ନାହାନ ସାରି ଚମ୍ପା ପୁଷ୍ପ ଆଣି । ଶିବଲିଙ୍ଗେ ଦେଇ ପୂଜ ସଖୀଶିରୋମଣି । ରସଦାୟୀ ଗୋ ॥ ଏ ଶୋକସାଗରୁ କର ତ୍ରାହି ଗୋ । ୧୩ । ବାର୍‌ମାସ ଷଡ଼ଋତୁ ସମ୍ପୂର୍ଣ୍ଣ ହୋଇଲେ । ସୀତା ରାମ ପାଦ ଚିନ୍ତି ଜଗନ୍ନାଥ ବୋଲେ । ମୂଢ଼ଜ୍ଞାନ ହେ । ସେ ପାଦ କମଳେ ରହୁ ମନ ହେ । ୧୪ ।



୭ମ ଛାନ୍ଦ । ସୀତାବାର୍‌ମାସି, ରାଗ—ଖଣ୍ଡିତା ।

ଅଶୋକ କାନନେ ବସି ସୀତାଠାକୁରାଣୀ । ଶ୍ରୀରାମଙ୍କ ଗୁଣ ଗୁଣି କାନ୍ଦନ୍ତି ବାହୁନି । ଶୋକଭରି ହେ । କେଉଣେ ଛାଡ଼ି ଗଲ ପ୍ରାଣେଶ୍ୱର ହେ ॥ ମାର୍ଗଶିର ମାସେ ପୁଣ ପ୍ରଭୁ ଦାଶରଥି । ବନସ୍ତରେ ଖୋଜୁଥିବେ

ଘେନ ସଙ୍ଗିନି । ମୋ ବିରହେ ଗୋ । ଅକୁଳ ହେଉଣ ଥିବେ ଦୁହେଁ
ଗୋ । ୨ । ପୌଷମାସେ ବଡ ତେଜ ଊଣା ହୁଏ ପୁଣି । ତୁଷାରବି
ବିନ୍ଦୁମାନ ପଡ଼ଇ ଧରଣୀ । ଘୋରଶୀତେ ଗୋ । ବନେ ବୁଲୁ ଥିବେ
ବେନି ଭ୍ରାତେ ଗୋ । ୩ । ମାଘେ ଶ୍ରୀରାମ ଲକ୍ଷ୍ମଣ ଖୋଜି ବନଗିରି ।
ମୋ ଯୋଗେ ବିକଳ ହୋଇଥିବେ ନୃପଧୀସ୍ତ । ଧିକ ବିଧି ରେ । ବନେ
ଉନ୍ମାଦିନୀ କଲୁ ତୁହି ରେ । ୪ । ଫାଲ୍‌ଗୁନେ ବସନ୍ତ ବାୟୁ ବହେ
ଘନ ଘନ । ନବପଲ୍ଲବରେ ପୁଷ୍ପ ଦିଶେ ଶୋଭିବନ । ପିକସ୍ୱନ ଗୋ ।
ଶୁଣି ଅସ୍ଥିର ହୋଇବେ ପୁଣ ଗୋ । ୫ । ଚଇତେ ପ୍ରଭୁଙ୍କ ଜନ୍ମ
ଉତ୍ସବ ହୁଅଇ । ବନେ ଆସି କେତେ କଷ୍ଟ ସହିଲେ ମୋ ପାଇଁ ।
ଧିକ ମୁହିଁ ଗୋ । ମୋ ପ୍ରାଣ ନ ଯାଏ କାହିଁପାଇଁ ଗୋ । ୬ ।
ବୈଶାଖମାସ ଅଟଇ ନିଦାଘର କାଳ । ବନଚିର ବୁଲି ଅଙ୍ଗ ବହୁଥିବ
ଝାଳ । ମନ୍ଦବିଧି ରେ । ଏଡା କି କପାଳେ ଥିଲୁ ଲିହି ରେ । ୭ ।
ଜ୍ୟେଷ୍ଠମାସେ ସୂର୍ଯ୍ୟ ତେଜ ବଢ଼ଇ ଦ୍ୱିଗୁଣ । ରାଜସିଂହାସନ ଛାଡ଼ି ବୁଲୁ-
ଛନ୍ତି ବନ । ବୃକ୍ଷମୂଳେ ଗୋ । ମୃଗସ୍ଥଲେ ଶୋଇ ଥିବେ ତଳେ
ଗୋ । ୮ । ଅଷାଢ଼ରେ ମେଘମାଳ ଅଚ୍ଛାଦେ ଗଗନେ । ଦେଖି ମୟୂର
ମୟୂରୀ ନାଚନ୍ତି କାନନେ । ମୋ ବିରହେ ଗୋ । ବନେ କାନ୍ଦୁଥିବେ
ରାମ ରାଘବେ ଗୋ । ୯ । ଧାରଶ୍ରାବଣ ମାସରେ ପ୍ରଭୁ ରଘୁବୀର । ଖୋଜୁ
ଥିବେ ବନଲତା ଚିର ଯେ କନ୍ଦର । ମୋର ପାଇଁ ଗୋ । କି କଷ୍ଟ

ଯାଇଲେ ରଘୁସାଇଁ ଗୋ । ୧୦ । ଭାଦ୍ରବ ମାସରେ ନଦୀମାନେ ପୂର୍ଣ୍ଣ ହୋଇ । ପଥିକଙ୍କ ପଥରୁଦ୍ଧ କରୁଥିବେ ସେହି । ପ୍ରାଣେଶ୍ବର ଗୋ । ବସି କାନ୍ଦୁଥିବେ ନଦୀକୂଳ ଗୋ । ୧୧ । ଅଶ୍ବିନେ ଶରଦକାଳ ହୁଅନ୍ତେ ପ୍ରବେଶ । ବନଜୀବଙ୍କୁ ପଚ୍ଛରୁଥିବେ ରଘୁଶିଷ । ଶୋକା- କୁଳେ ଗୋ । କେ ଦେଖିଛ ମୋ ସୀତାକୁ ଡ଼ାକେ ଗୋ । ୧୨ । କାର୍ତ୍ତିକେ ପ୍ରଭାତୁ ସ୍ନାନ ସାରୁ ନର ନାରୀ । ଦାମୋଦର ପୂଜୁଥିବେ ଦେଇ ତୁଳ ତୁଳ । ମୋ କପାଳେ ଗୋ । ଏତେ ଦୁଃଖ ବ୍ରହ୍ମ ଲେଖି ଥିଲେ ଗୋ । ୧୩ । ଶ୍ରୀରାମ ପଦ୍ମରେ ସଦା ମୋର ଚିତ୍ତ ଥାଉ । ସୀତା ରାମ ନାମଧର ଦିନ କଟିଯାଉ । ଜଗନ୍ନାଥ ହେ । ଏହି ଭିକ୍ଷା ମାଗେ ଅନୁବ୍ରତ ହେ । ୧୪ ।

ସମାପ୍ତ ।



Printed by Nityananda Sahoo A. Press Cuttack

